ପ୍ରାଚୀନ ତାଳପତ୍ର ପୋଥିର ନିୟମାନୁକରଣେ

ଶ୍ରୀ ବଳଭଦ୍ର ପାଣିଗ୍ରାହିଙ୍କ ପ୍ରଣୀତ

# ଧାନ ମାଣୀକା

ବା

## ମାଗଶୀର ଗୁରୁବାର ଓଷା



ପ୍ରକାଶକ— ହିନ୍ଦୁସ୍ଥାନ ପ୍ରେସ୍

ବ୍ରହ୍ମପୁର, (ଗଞ୍ଜାମ)

ମୂଲ୍ୟ ଦୁଇଅଣା ନୂଆ ୧୨ ପଇସା

# ଶ୍ରୀ ଲକ୍ଷ୍ମୀଦେବ୍ୟା

# ଧାନମାଣିକା ଓଷା



ଜୟ ଜୟ ପଦ୍ମାଳୟା କମଳା । ଦୁଃଖୀ ଦୁଃଖସିନ୍ଧୁ ତାରକଭେଳା
ଜୟ ଲୋକମାତା ସାଗର ସୁତା । ଜୟ ଜୟ ମଧୁହର ବନିତା ॥
ଜୟ ପଙ୍କଜଆସନୀ ଇନ୍ଦିରା । ଜୟ କୃପାମୟୀ ଦୀନ ଆସରା ॥
ଜୟ ଜୟ ମା ବୈକୁଣ୍ଠବାସିନୀ । କର କରୁଣା ତୁଷ୍ଟି ଦଇନୀ ॥
ଦରିଦ୍ରଭଞ୍ଜନୀ ତୋ ନାମ ଯେଣୁ । ଅଛି ଅବନୀରେ ଶାସ୍ତ୍ରେ ଦେଖଣୁ
ତୁ କି ନଜାଣୁ ମୋ ଅନ୍ତରଦୁଃଖ । ପାଦତଳେ ଠାବ ଦେଇଣ ରଖ
ଶୁଣ ସୁବଚନେ ମନକର୍ଣ୍ଣ ଦେଇ । ଆଜନ୍ମ ମୂରୁଖ ମୋ ଜ୍ଞାନ ନାହିଁ ॥
ଶିବାଧବ ଦେବାଙ୍କୁ ଉଚ୍ଚାରି । ଧାନମାଣିକା କହଇ ପ୍ରଚୁର ॥
ଦିନେ ବୈକୁଣ୍ଠେ ରତ୍ନପଲଙ୍କରେ । ରମାଦେବୀଙ୍କୁ ଘେନିଣ ଅଙ୍କରେ
କହିଲେ ଦେବଦେବ ଜଗନ୍ନାଥ । ଧର୍ମକ ଦେଖ ମନରେ ଆରତ ॥
ଶୁଣି କହନ୍ତି ସିନ୍ଧୁଜ ରମା । ଜାଣିବ ପ୍ରଭୁ ଦୋଷ ହେଲେ କ୍ଷମା
ହସି ହୃଷୀକେଶ ଭଣିଲେ ଧୀରେ । କହ ସଜନୀ କି ପାଞ୍ଚୁ ମନରେ ॥
କହନ୍ତି ଲକ୍ଷ୍ମୀ ଶୁଣ ପ୍ରାଣେଶ । ଆଜ ମୋହର ପୂଜାର ଦିବସ ॥
ବରିଷକରେ ସାର ମାର୍ଗଶିର । ତହିଁ ମଧ୍ୟରୁ ଶ୍ରେଷ୍ଠ ଗୁରୁବାର ॥
ଏହି ଦିନରେ ସବିନୟ ହୋଇ । ଯେଉଁଜଣନାରୀ ମୋ ପାଦେ ପୂଜଇ
ତାର ହୁଏ ଅଚଳାଚଳ ଧନ । ମୋରେ ଦ୍ରୋହକଲେ ନମିଳେ ଅନ୍ନ
ଶୁଣି କହିଲେ ବସୁଦେବ ସୁତ । ଭୂମଗିରେ ମୁଁ ଦେଖିଲି ଆଚମ୍ବିତ
ତୋରେ ଦ୍ରୋହକରି କେ ଦୁଃଖିହେଲା, ପୂଜାକରି କେ ସୁଖବହିଲା
ଶୁଣି କହନ୍ତି ରତ୍ନାକର ଝିଅ । ଶୁଣ ପ୍ରଭୁ ଏଥେ କରଣ ଲକ୍ଷ୍ୟ ॥
ଏକରାଜ୍ୟେ ଥାଇ ସାଧବ ଜଣେ । ସମାନ ତାକୁ ନଥିଲେ ଧନେ ।
ନାମ ତାହାର ଶ୍ରୀଲକ୍ଷ୍ମୀ ସାଧବ । ତା ପ୍ରିୟା କୃଷ୍ଣା ଗର୍ବ କଲି ଖର୍ବ
ମୋରେ ଦ୍ରୋହକରି ଅର୍ପିତ ହେଲା । ହରି କହନ୍ତି ଆଶ୍ଚର୍ଯ୍ୟ ଲାଗିଲା ॥

ଧର୍ମ କର୍ମ ହୋଇଲା କପର । କହନ୍ତି ପ୍ରିୟସୀ ମୋ ଅଙ୍ଗ ବିସ୍ତାର
କହନ୍ତି ଶୁଣ ପ୍ରିୟରେ କମଳା । ଏକମନେ ଶୁଣ ପଞ୍ଚଭୋଳା ।
କାର୍ତ୍ତିକ ଅନ୍ତେ ହେଲା ମାର୍ଗଶିର । ପଦ୍ମ ଷଡ଼ଙ୍ଗ ନୂପୁରରେ ମୋର ॥
ଖଞ୍ଜି ଚରଣ ଚାପା ପାଇଁ ହେ ମୁହିଁ । ମନ୍ଦର ବତେଜଲି ଦ୍ୱିପ ହୋଇ ।
ବୁଲି ବୁଲି ହେଲି ସାଧବଦ୍ୱାରେ । ସାଧବାଣୀକୁ ଦେଖିଲି ସେଠାରେ
ମୋତେ ଗୃହିଁ ସାଧବାଣୀ ପୁଛଇ । କାହୁଁ ଅଇଲ ହେନାନା ଗୋସାଇଁ
ସାଧବାଣୀକୁ କହିଲି ଏପରି । ଆସିଥିଲି ଏହି ନଗର ଫେରି ।
ଆଜ ଲକ୍ଷ୍ମୀଦେବୀଙ୍କ ବାର ବ୍ରତ । କେଣୁ ପାଉଛୁ ମୋ ପୂଜକୁ ସତ୍ୟ
କାହିଁକି ତୁମ୍ଭଘର ଅଳପାରେ । ରହିଅଛୁ ଆଳପଣ ଦାନରେ ॥
ଗୁରୁବାର ବୋଲି ନ ଜାଣିନାହୁଁ । ତହ ହେତୁ କର୍ମ କଥା ନ କହୁ ॥
ଶୁଣିବର କହିଲା ସାଧବାଣୀ । ଅଛିତ ହିଅ ତୁ ବୁଢ଼ୀ ରଙ୍କୁଣୀ ।
ଯାହା ଘରରେ ନଥିବ ସମ୍ପଦ । ସେହି ସିନା ପୂଜିବ ଲକ୍ଷ୍ମୀପଦ ।
ନାହିଁକି ମୋର କେବଣ ସମ୍ପତ୍ତି । କମଳାଲକ୍ଷ୍ମୀଙ୍କୁ ହୋଇବ ବିନତି ॥
ତହୁ କହ ଲକ୍ଷ୍ମୀବ୍ରତ ହେ ନାମ । କରିବ ତାହା ମନଗଲେ ମାନ
ମୁଁ କହିଲି ଶୁଣ ସାଧବ ନାରୀ । ନଦୀରେ ଗଙ୍ଗା ଶ୍ରେଷ୍ଠ ଯେଉଁପରି
ସେପରି ବରଷକେ ଗୁରୁବାର । ଗୁରୁଗୋଟି ଶ୍ରେଷ୍ଠ ମାର୍ଗଶିର ॥
ମହାଲକ୍ଷ୍ମୀଙ୍କୁ ପୂଜିବା ଦିବସ । ଏ ଧାନମାଣିକା ପ୍ରଚୁର ବଶ୍ୟ ॥
ସଂସାରରେ ଥାଉ ଉଠି ନାରୀ । ଦ୍ୱାର ଲିପିବ ଗୋମୟକୁ ଧରି
ତହୁଁ ସ୍ନାନକରି ପୁରେ ଆସିବ । ପାଟ ବା ଶୁକ୍ଳ ବସ୍ତ୍ରକ ପିନ୍ଧିବ ।
ଦ୍ୱାରେ ଲେଖିବ ଝୋଟିନା ନାମରେ, ଲକ୍ଷ୍ମୀ ପାଦପଦ୍ମ ଚିତା ସହିତେ
ନୀଳବର୍ଣ୍ଣ କରା ଭାଣ୍ଡ ପିଢ଼ା ତଳେ । ପଦ୍ମଫୁଲ ଶୋଭାଇବ ଚନ୍ଦନରେ ।
ମାଜଣା କରି ସିନ୍ଦୂର ନନ୍ଦମୀ । ସିନ୍ଦୁର ଗନ୍ଧ କୁଙ୍କୁମକୁ ଦେଇ ।
ବ୍ରତ ପେଡ଼ିପାରେ ଅଡ଼ାଗଉଣୀ । ରଖି ମନେ ଚିନ୍ତିବ କମଳାନୀ ॥
ଛାହିଁରେ ପୂରଣ କରିବ ଧାନ । ନୋହୁଥିବ ଝିଂବା ଶୁଖିଲ ବର୍ଣ୍ଣ

ଉପରେ ଗୁହ୍ନୁଆ ଚୈଗ ବାନ୍ଧିବ । ଲକ୍ଷ୍ମୀଙ୍କୁ ଏକ ପାଟ ପିନ୍ଧାଇବ ॥
ନାନା ଅଳଙ୍କାର ଚେଞ୍ଜିବ ନେଇ । ଲକ୍ଷ୍ମୀ ଶରଧା ପଦୁଥିବ ତହିଁ ॥
ହୁଳହୁଳି ଦେଇ କରଯୋଡିବ । ରମଣୀ ବୋଲନ୍ତି ଦାସ ହରିସାରବ
ଜୟ ଜୟ ମା ବନ୍ତି ପାଟରାଣୀ । ଦଅ ସ୍ତ୍ରୀନଜର୍ତ୍ନ ଆଡ଼ଗୁହ୍ନାଣି ॥
ପୁଣି ବାଲଭୋଗକୁ କରାଇବ । ପୁଷ୍ପ ବନ୍ଦାଇ ହୁଳହୁଳି ଦେବ ॥
ମଣ୍ଡା କକ୍ କାକର ତନ୍ତ୍ କାନ୍ତି । ଗଜା ହିଲ୍ ଇତୁ ଘୃତ ସଚୁନ୍ତ୍ର ॥
ନବାତପଣା ଅଁଶୁ କ୍ଷୀର ଦହି । ଖିରି ଖେଚଡ଼ି ଅଟକାଳି ଥୋଇ
ଟଭ୍ର ନାରଙ୍ଗ ଜାମ୍ବ ନଡ଼ିକାଲ । ତମଳା କଦଳୀ ନାନାଦ ଫଳ ॥
ଏ ବଧିରେ ପୂଜା କରି ବସିବ । ଗୁଆ ବୃନ୍ତରେ ଧାଠ ଜାଳଥିବ ॥
ଶୁଣି ସାଧବାଣୀ ଖଙ୍ଗ ପାଇଲା । ଏକ ବ୍ରତବୋଲି ହସି ଉଠିଲା ॥
ସେଷେସେଠାରୁ ମୁଁ ବାହୁଡଲି । ବାଟେ ତାରଅ ଶାମକୁ ଦେଖିଲି
ଦେଖିଶାମ ମୋତେ ବନପ୍ରୁହେଲ, କାହ୍ନୁ ଗୋସାଇଁ ଅଇଲବୋଇଲ
ମୁଁ କହିଲି ମାଇଥିଲି ବଦ୍ଦର । ତୋମାଠ ମୋତେ କହିଲଧିକ୍କାର
ଏଣୁ ଆଉଛି ଗୃହକୁ ଆନ୍ତର । ଧଇଲ ଶ୍ୟାମା ଶୁଣିଣ ପଯ୍ଯର ॥
ତାର ବଜତ ଦେଖି ଦୟାକଲି । ଧାନମାଣିକା ବ୍ରତ କହିଲ ॥
ମୋଯାଣୁ ପାଇସେ ପୂଜିଲ ମୋତେ, ପାହାହେଲ ଶୁଖ ବରଷଅନ୍ତେ
ମୁଁ ହେଣୁ ଅଟେ ହଟି କମଳାମା । ଲକ୍ଷ୍ମୀଶ୍ରୀ ସାଧବ ହେଲ ନର୍ଦ୍ଧନ ॥
ତା ହିଅକୁ ଲାଗିଲ ଗଜଚର । ହିଅ ଗୃହରୁ ହେବାରୁ ଅନ୍ତର ॥
ଲକ୍ଷ୍ମୀ ଶ୍ରୀ ସାଧବ ନାମ ଯାହାର । ଭିକ୍ଷା ମାଗି ବୁଲିଲ ଦ୍ୱାର ଦ୍ୱାର
ଏମନ୍ତ ତାକୁ ବହୁ କଷ୍ଟ ହେଲ । କେବଳ ପ୍ରାଣେ ମାହ ନ ମାରିଲ
ସାଧବାଣୀ ଦୁଃଖ କହି ନସରେ । କ୍ଷୀଣ ହୋଇଗଲ ଅନ୍ନ କଷ୍ଟରେ
ଲୋକେକହିଲେ ସାଧବକୁ ଗୁହିଁ । ହିଅ ତୁମ୍ଭର ଅଛି ରାଣୀ ହୋଇ
ତାଙ୍କୁ ଭେଟିଲେ ଯିବ ତୁମ୍ଭଦୁଃଖ, କମାଇ ବୁଲୁଛ ହୋଇନ ଦେଖ
ସାଧବକହେ ସେ ଚହ୍ନିବ କାହିଁ । ଲୋକେକହନ୍ତି ବୁହଥରେ ଯାଇ

ଶୁଣି ସାଧବ ସାଧବାଣୀ ତୁରନ୍ତେ, ରାଜବାଟିରେ ପରବେଶ ହେଲେ
ଦାସୀଏ କହିଲେ ବୁଢୀକୁ ଶୁହିଁ । କଏଗୋ ତୁମ୍ଭେ ବସିଛ କିମ୍ପାଇ
ଶୁଣି ଧୀରେ କହନ୍ତି ସାଧୁବାଣୀ । ତୁମ୍ଭ ନଅରେ ଯେ ଅଛନ୍ତି ରାଣୀ
ମୁଁ ତାହାର ମାତା ଏ ତାହାର ପିତା, ଦୁଃଖିହେଲୁ ଲକ୍ଷ୍ମୀକଲେ ଅହନ୍ତା
ଥିଲା ଅଶେଷ ସମ୍ପତ୍ତି ଅମ୍ଭର । ଏବେ ଭିକ୍ଷା ମାଗୁଛୁ ଦ୍ୱାରଦ୍ୱାର
କହ ତୁମ୍ଭର ରାଣୀ ଆଗେ ଯାଇ । ଦାସୀ ହସିଲେ ନାକେ କରଦେଇ
କେଉଁଣେ କହର ହୋଇଥିବ ସତ । ଚାଲ କହିବା ରାଣୀଙ୍କୁ ଏମନ୍ତ ।
କହି ରାଣୀ ନିକଟେ ପ୍ରବେଶିଲେ । ଶୁଣି ଶ୍ୟାମାଦେଈ କାନ୍ଦି ଉଠିଲେ
ବୋଲନ୍ତି ଆଣ ମୋ'ବାପାମା' ହୋଇଛନ୍ତିସେ ଲକ୍ଷ୍ମୀର ଦୋରେହ
ଶ୍ୟାମାଦେଖି ବାପାମାଙ୍କ ଦୁଃଖ । ବୋଲଇହୋଇଲକେଡ଼େନରେଖ
ଦାସୀଏ ତହୁଁ ତତକ୍ଷଣେ ଗଲେ । ସାଧବ ସାଧବାଣୀକୁ ଆଣିଲେ ॥
ଏମନ୍ତେ ତହୁଁ କେତେଦିନ ଗଲା । କାର୍ତ୍ତିକ ଅନ୍ତେ ମାର୍ଗଶିର ହେଲା
ପ୍ରବେଶହେଲା ଆଦ୍ୟ ଗୁରୁବାର । ଶ୍ୟାମା ଭିଆଇଲା ବ୍ରତ ସମ୍ଭାର
ହେନାଥ ଶୁଣ ଶ୍ୟାମା ପୂଜାକଲା । ସାଧବାଣୀକୁ ବୁଝାଇ କହିଲା ॥
ଲକ୍ଷ୍ମୀଦୋଷେ ହୋଇଲୁ ହେଲ ଏମନ୍ତ । ଏବେ କର ଧାନମାଣିକା ବ୍ରତ ॥
ତୁହୁଁ କର ସାଧବାଣୀ ପିଲାଙ୍କ । ଯେବେ ଖାଇଛୁ ଟଙ୍କ ହୋଇଣ ରଙ୍କ
ଶ୍ୟାମାଙ୍କ ଅନ୍ନ ଶମ୍ଭୁକୁ ଅଇଲା, ଦେଖି ତାଠାରେ ମୋର କ୍ରୋଧହେଲା
ବୋଇଲି ଗାଲେ ଦଅ ଚୁନକାଳି, ଶୁଣି ଗାଲେ ଦେଲା ତାର ଦୁଇଆଳି
କାନ୍ଦି ମରଇ ତଳକୁ ଚାଲିଲା । ବରି ଧାନ ଗୁଣ୍ଡଲ ବାଛୁଥିଲା ॥
ଦୟାକରି ମୁଁ ତାକୁ ଡାକିଲି । ଯାଅ ତୋ ଗୃହେ ବୋଲିଆଜ୍ଞାଦେଲି
ପୂର୍ବ ହୋଇବ ଅଧିକ ସମ୍ପତ୍ତି । ଅନ୍ନଜନା ହୋଇବ ପୁତ୍ର ନାତି
ପ୍ରଣାମ କରି ସାଧବାଣୀ ଗଲା । ସୁଖେ ତା ପୁରେ ବିହାର କରିଲା
ଧାନମାଣିକା ବ୍ରତକୁ ବିଧିରେ । ପୂଜା କରୁଥାଏ ଅତି ଆଦରେ ।
ଅନ୍ତେ ସାଧବ ସାଧବାଣୀ ଶ୍ୟାମା, ଭେଟହେଲେ ମୋତେ କହନ୍ତି ରମା

ତୁମ୍ଭେ କି ନଜାଣ ବିପ୍ରର ଖ୍ୟାତି । ମୋତେ ବରଜି ଲଭିବାର ଶକ୍ତି ।
ହସି ଶ୍ରୀହରି କହନ୍ତି ତୁମ୍ଭର । ବ୍ରତଜନଙ୍କୁ ମୁଁ ଦଅଇ ବର ॥
ସର୍ବଦା ତାହାର ଗୃହରେ ଥାଅ । ନାହିଁ ଆମ୍ଭର ମନା ଚଳିଯାଅ ॥
ଏ ଲକ୍ଷ୍ମୀ ଚରିତ୍ର ଧାନମାଣିକା । ପଢନ୍ତେ ଶୁଣନ୍ତେ ନହୁଏ ଦକା ॥
ଶେଷ ହେଲା ଧାନମାଣିକା ବ୍ରତ । ବଳଭଦ୍ରଙ୍କୁ ରଖ ଅପ୍ରମାତ ॥

—※—

## ଭାଗବତ—ବୃତ୍ତ

ଶୁଣ ସକଳ ନାରୀଗଣେ । ଧାନମାଣିକା ତୋଷମନେ ॥
ଏମନ୍ତେ ଶ୍ରୀହରି ସ୍ମୃତରେ । କହୁଥିଲେ ଲକ୍ଷ୍ମୀ ବନସ୍ଥରେ ॥
ହସିଣ ଦେବ ଜଗନ୍ନାଥ । ପ୍ରିୟାଙ୍କୁ କହିଲେ ଏମନ୍ତ ॥
ଯାଅ ଗୋ ଲକ୍ଷ୍ମୀ ଇଚ୍ଛା ଯହିଁ । ଆମ୍ଭର ଆଉ ମନା ନାହିଁ ॥
ଶୁଣି କମଳା ଚଳିଗଲେ । ମହାକ୍ଷେତ୍ରରେ ବିହରିଲେ ॥
ଦେଖିଲେ ଏକଇ ବ୍ରାହ୍ମଣୀ । ପୂଜା କରୁଛି କମଳିନୀ ॥
ଶ୍ରଦ୍ଧାରେ ଲକ୍ଷ୍ମୀ ତାର ପୁରେ । ବିଜୟ ପଦ୍ମର ଉପରେ ॥
ପୂଜଇ ଭକ୍ତିରେ ସେ ନାରୀ । ଗୃହିଁ ତୋଷ ସିନ୍ଧୁକୁମାରୀ ॥
ତାଙ୍କୁ ଗୃହିଁଣ ତୋଷ ହେଲେ । ଅନେକ ଧନ ଯାଚିଦେଲେ ॥
ସେଠାରୁ ବଳେ ହରିପ୍ରିୟା । ଯେଣୁ ସେ ପ୍ରାଣୀରେ ସୁଦୟା ॥
ଏମନ୍ତ ଏକ ସାଧବର । ଦ୍ୱାରରେ ହୋଇଲେ ସତ୍ୱର ॥
ସାଧବାଣୀ ଯେ ଦ୍ୱାରେ ଥିଲେ । ଲକ୍ଷ୍ମୀଙ୍କି ଚିହ୍ନି ନ ପାରିଲେ ॥
ସାଧବାଣୀକି ଲକ୍ଷ୍ମୀ ଚାହିଁ । କହନ୍ତି ଆନନ୍ଦିତ ହୋଇ ॥
ତୁ କି ନଜାଣୁ ଲକ୍ଷ୍ମୀ ସେବା । ଦ୍ୱାରରେ ହୋଇଅଛୁ ଉଭା ॥
କହଇ ସାଧବ ରମଣୀ । ହେ ନାରୀ ମୋତେ କହ ପୁଣି ॥
କିପରି ହୁଏ ସେହି ବ୍ରତ । ସେ ବ୍ରତେ କି ଦ୍ରବ୍ୟ ଉଚିତ ॥
କହନ୍ତି ଲକ୍ଷ୍ମୀ ତୋଷ ଚିତ୍ତେ । ସାଧବ ପ୍ରିୟାର ଅଗ୍ରତେ ॥

ଗୁରୁବାରରେ ପୋଡ଼ା ଦ୍ରବ୍ୟ । ଛେଦେ ଅନ୍ଧାର ନ ବସିବ ॥
ଗୁରୁବାରେ ଅମିଷ ନ ଖାଇ । ଖଇ ନ ଖାଇ ନ ଭୁଞ୍ଜଇ ॥
ପୁରୁଷ ମେଳ ନ ହୁଅଇ । ଏମନ୍ତ ନାରୀ ଯହିଁ ଥାଇ ॥
ଲକ୍ଷ୍ମୀ ତହାଙ୍କୁ ସୁଖ ପାନ୍ତ । ଅଶେଷ ଚଉ ସୁତ ଦ୍ୟନ୍ତ ॥
ଆଉର ନ ଭଙ୍ଗିବ ବେଲ । ଏତେକ ମୋର ବର ବୋଲ ॥
ଦହି ଦୁଧ ଯେ ଘୃତ ସର । ଅରୁଆ ଅନ୍ନରେ ଉଦର ॥
ପୂର୍ଣ୍ଣ କରିବ ଶୁକ୍ଳ ପିଣ୍ଡ । ପୂଜାର ଦ୍ରବ୍ୟକୁ ସମ୍ପାଦ ॥
ପ୍ରଥମେ ପଦ [illegible]ଣ୍ଡଳରେ । ବିଜେ କରାଇବ ଯତ୍ନରେ ॥
ଦ୍ୱିତୀୟେ ଗନ୍ଧ ପୁଷ୍ପ ଦେବ । ଧୂପ ଦୀପାଦ ଯୋଗାଇବ ॥
ତାପରେ ବାଲଧୂପ ହୋଇ । ଯାହା ଭାଗ୍ୟରେ ଯାହାଥାଇ ॥
ଶୁକଳ ଧାନ ଶିଂଶା ଅଣି । ମେଣ୍ଟା କରିବ ଝୋଟେ ପୁଣି ॥
ଆଜୁ ଏ ବ୍ରତ ଛୁହ୍ର କର । କହି ଲକ୍ଷ୍ମୀ ହେଲେ ଅନ୍ତର ॥
ନିଜ ଦେଉଳେ ପ୍ରବେଶିଲେ । ରନ୍ଧଣା ବିଧି ଶେଷ କଲେ ॥
ଲକ୍ଷ୍ମୀଙ୍କ ଶ୍ରୀମୁଖ ବଚନ । ମିଥ୍ୟା ନମଣ ସାଧୁଜନ ॥
ହାସ୍ୟ ଯେ କଲେ ବଡମାଟିରେ । ଦରିଦ୍ର ହୁଏ ଯୁଗାନ୍ତରେ ॥
ଶ୍ରଦ୍ଧାରେ ଯେ ନର ପଢ଼ିବ । ଅର୍ଥ ତନୟ ସେ ପାଇବ ॥
ଧାନ ମାଣିକା ବ୍ରତ ଦିନ । ପଢ଼ିଲେ ଶୁଣିଲେ କାରଣ ॥
ଅନ୍ୟ ଦିନରେ ଗୁରୁବାରେ । ପଢ଼ିଲେ ବସେ ବୈକୁଣ୍ଠରେ ॥
ଏକଥା ଆନ ନୋହୁବଟି । ଆନ ହୋଇ ପାରଇ ସୃଷ୍ଟି ॥
ଧାନ-ମାଣିକା ନଅଷରେ । ସରନ୍ତି ଲକ୍ଷ୍ମୀଙ୍କ କୃପାରେ ॥
ଏ ବ୍ରତ କଲେ ବଧୂମତେ । ବିଧବା ନୁହେ କଦାଚିତେ ॥
କହଇ ବଳଭଦ୍ର ଦ୍ୱିଜ । ସର ଶ୍ରୀଲକ୍ଷ୍ମୀ ପଦାମ୍ବୁଜ ॥

—ସମାପ୍ତ—